ଘୋଷିଥିଲେ ଭବେ ବଜ୍ରଘୃ-ନିଶାଣ,
ବନ୍ଦେ ତାଂ ରତ୍ନପ୍ରସବିନୀମ୍ । ୭ ।

ଦିବା ନିଶି ଯେନ୍ତୁ ଅତି ସେନ୍ହେଭରେ
ପାଳୁଅଛୁ ନିଜ ସନ୍ତାନ ସକଳେ,
ବିପଦେ ଆପଦେ ଆବର ଅଞ୍ଚଳେ,
ବନ୍ଦେ ତାଂ କ୍ଷାନ୍ତିବିଧାୟିନୀମ୍ । ୮ ।

ବିଶ୍ୱପତି-ପଦ ହୃଦେ ହୃଦେ ଧରି;
ଆସ ଭ୍ରାତୃଗଣେ ଏକମେଳ ହୋଇ,
ତ୍ରିଂଶ-କୋଟି-କଣ୍ଠେ ଏକତାନେ ଗାଇ,
"ବନ୍ଦେ ସ୍ନେହମୟୀ-ଜନନୀମ୍" । ୯ ।

ଗାଅରେ ସମୀର କାନନ ଖେଳାଇ,
ଗାଅ ପ୍ରତିଧ୍ୱନି ଶୈଳ ଦୋଳାଇ,
ଗାଅ ନଦ ନଦୀ ସିନ୍ଧୁ ଉଛୁଳାଇ,
"ବନ୍ଦେ ତୀର୍ଥମୟୀ-ଜନନୀମ୍" । ୧୦ ।

ଓଁ

୧ — "ଓଁ ତତ୍ ସତ୍"

୨ — "ଓଁ ଶାନ୍ତି ! ଶାନ୍ତି ! ! ଶାନ୍ତି ! ! !

୩ — "ବ୍ରହ୍ମକୃପାହି କେବଳଂ"

୪ — "ହରେର୍ନାମୈବ କେବଳଂ"

୫ — "ଯତୋଧର୍ମସ୍ତତୋଜୟଃ"

୬ — "ଅହିଂସା ପରମୋ ଧର୍ମଃ"

୭ — "ନାସ୍ତି ସତ୍ୟସମୋଧର୍ମଃ"

୮ — "ଜୀବେ ମୈତ୍ରୀ"

୯ — "ସତ୍ୟମେବ ଜୟତେ"

୧୦ — "ବନ୍ଦେ ମାତରମ୍"

୧୧ — "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

୧୨ — "ଦେଶାର୍ଥଂ ଦେହମୁତ୍ସୃଜେତ୍"

୧୩ — "ସିଦ୍ଧମିତି ଦୃଢ଼ବ୍ରତଃ"

୧୪ — "କୀର୍ତ୍ତିର୍ଯସ୍ୟ ସ ଜୀବତି"

୧୫ — "ଯତ୍ନେନ କମସାଧନମ୍"

୪୪ — "ଜାଗ ଜାଗ, ଜାଗ ଜାଗ
ଜନ୍ମଭୂମି ସେବାରେ ।"

୪୫ — "ମାଗ ବୀର୍ଯ୍ୟ, ମାଗ ଧୈର୍ଯ୍ୟ
ବିଶ୍ୱରାଜ ଦୁଆରେ ।"

୪୬ — "କର କାର୍ଯ୍ୟ, ହୁଅ ଆର୍ଯ୍ୟ
କର୍ମଭୂମି-ସଂସାରେ ।"

୪୭ — "ଆଗେ ଚାଲ, ଆଗେ ଚାଲ
ଥାଉ ଥାଉ ସମୟ ।"

୪୮ — ମିଳି ଯାଇ ପରସ୍ପର
ମାତୃଭୂମି ସେବା କର ।

୪୯ — ପୁତ୍ର ସବେ ଯାଇ ଯାଇ,
ଯଶ କର ଦେଶପାଇଁ ।

୫୦ — ସାଧନାରେ ହୁଏ ସିଦ୍ଧି,
ଦିଶୁ ସଦା ଏହି ବୁଦ୍ଧି ।

୫୧ — ନିଜ ସ୍ୱାର୍ଥ ମନୁ ମୁଞ୍ଚ,
ପରପାଇଁ ଭବେ ବଞ୍ଚ ।

୫୨ — ଯାହା ଦେଶ ହିତ କର୍ମ
ଯଥାର୍ଥରେ ତାହା ଧର୍ମ ।

୫୩ — ଆର୍ଯ୍ୟବଂଶେ ହୋଇ ଜନ୍ମ
ନ ହୁଅଟି ଜଡ଼ସମ ।

୫୪ — ଉଠେ ରକ୍ତ ନାଚେ ସ୍ନେହ
ସମଠାରେ ପ୍ରେମ ବହ ।

୫୫ — ସୁଖାଳସ୍ୟ ପରିହର,
ସଦା ହିତ କର୍ମ କର ।

୫୬ — ବର ମାଗି ବିଶ୍ୱେଶ୍ୱରେ
ଧର କର୍ମ-ଅସି କରେ ।

୫୭ — ଦେଖିବ କି କର୍ମବୀର ?
ଯାଅ ତେବେ ସିନ୍ଧୁପାର ।

୫୮ — ହୁଅ କର୍ମ-ଯୋଗେ ଯୋଗୀ,
ଜାତି ନୋହୁ ଦୋଷଭାଗୀ ।

୫୯ — ଧନ ଯେବେ ଅଛି ହାତେ,
ଅର୍ପି ଦିଅ ଦେଶହିତେ ।

୬୦ — କାର୍ଯ୍ୟକ୍ଷେତ୍ରେ ଦେଇ ପ୍ରାଣ
ରଖ ପୂର୍ବ-ପିତୃ-ଠାଣ ।

୬୧ — ଭୁଲ ନୀଚ ସ୍ୱାର୍ଥପଣ,
ଦେଶହିତେ ଦିଅ ମନ ।

୬୨ — ଜାତି-ସ୍ୱାର୍ଥ ଅଛୁ ଯହିଁ,
ନିଜ-ସ୍ୱାର୍ଥ ଭଲ ତହିଁ ।

୬୩ — ଯେଝା ଧନ ପ୍ରାଣ ମନ
ଦେଶେ କର ସମର୍ପଣ ।

୬୪ — ପାଳ ଏକତାର ବ୍ରତ
ଦେଶ ହିତେ ହୁଅ ରତ ।

୬୫ — "ଏକତା" ପରମ ସୁଧା,
ହର ନେବ ଜାତି-କ୍ଷୁଧା ।

୬୬ — ଏକତାରେ ଦେଶୋନ୍ନତି,
ଅନୈକ୍ୟରେ ଅବନତି ।

୬୭ — ଧାବୀ ଶୁଭ ଇଚ୍ଛା ଯେବେ,
ମାଡି ଉଠ ଜାଗ୍ରତେ ।

୬୮ — ମାତୃଭୂମି-ସେବା-ଦୀକ୍ଷା ।
ଘେନ ଭାଇ ! ଏହି ଭିକ୍ଷା

୬୯ — ମାତୃପଦେ ପ୍ରେମାଞ୍ଜଳି
ଢାଳ ଦିଅ ସବେ ମିଳି ।

୭୦ — ଫିଙ୍ଗି ଦୂରେ ହିଂସା ରାଗି
ମିଳଯାଅ ଦେଶବାସୀ

୭୧ — ଜଗତଟି କର୍ମ-ମୟ,
ଯହିଁ କର୍ମ, ତହିଁ ଜୟ ।

୭୨ — ସ୍ୱଦେଶ-ହିତ ସାଧନେ
ଲାଗ ଭାଇ ପ୍ରାଣ ପଣେ ।

୭୩ — ଏକତା ମଧୁ ସମାନ,
ସୁଖେ ମିଳି କର ପାନ ।

୭୪ — ଦେଶହିତେ ଦିବା ରାତି
ଦିଅ ନିଜ କ୍ଷୁଦ୍ର ଶକ୍ତି ।

୭୫ — ନିଜ ସ୍ୱାର୍ଥେ ମାଡି ଯାଇଁ
ଦେଶ ସ୍ୱାର୍ଥ ଭୁଲ ନାହିଁ ।

୫୨— ତେଜି ଦୂରେ ବୃଥା ଖେଳ
କର୍ମ କର, ଗଲ୍ଣି ବେଳ ।

୫୩— ଜ୍ଞାନ ସବୁ କାର୍ଯ୍ୟ ମୂଳ,
ତାକୁ ଆଗେ କର ଠୁଳ ।

୫୪— ଯେତେଣେ ଇଚ୍ଛା ତେତେଣେ ଅନା,
ଲାଗିଛୁ କର୍ମ-ସାଧନା ।

୫୫— ସୁଖ ଦୁଃଖ ଗଲ୍ପ କାଟେଲି
ଦେଶ କଥା ପଢ଼ୁ ଥିଲେ ।

୫୬— କ୍ଷୁଦ୍ର କ୍ଷେତ୍ରେ ଧର କୋଣେ
କାର୍ଯ୍ୟ କଲେ ହେବ ଜଣେ ।

୫୭— ଜନ୍ମଭୂମି-ପୂଜା ପାଇଁ
ଧନ ପ୍ରାଣ ଦିଅ ଢାଳି ।

୫୮— ଗାଅ ଏକତାର ଜୟ,
ଜାତୀୟ ଗୌରବ ଜୟ ।

୫୯— ପ୍ରଭୁପଦେ ରଖି ଚିତ୍ତ ।
ଧର ମାତୃ-ହିତ-ବ୍ରତ ।

୧୦୦— ମାତୃସେବା କର ସାର,
ନୋହିଲେ ଜୀବନ ଛାର ।

୧୦୧— ମାତୃ-ପଦେ ଆତ୍ମଦାନ
କରଥାଏ ସୁସନ୍ତାନ ।

୧୦୨— ମାତୃ-ପଦେ ରଖି ଚିତ୍ତ
ଗାଅ ମାତୃ-ଯଶୋଗୀତ ।

୧୦୩— ମାତୃଭୂମି କଲେ ସେବା
ଦଶ ଜଣେ ଜଣେ ହେବା ।

୧୦୪— ହୋଇ କାର୍ଯ୍ୟ-ପ୍ରିୟ-ଜାତି
ବଢ଼ା ପୂର୍ବ-ପିତୃ-ଖ୍ୟାତି ।

୧୦୫— ସାମ୍ୟ ଭାବେ ଦେଖ ଭାଇ,
ଭାଇ ଭାଇ ଭେଦ କାହିଁ ?

୧୦୬— ନିଜ ଗୋଡ଼େ ହୋଇ ଛିଡ଼ା
ଜାତୀୟ-ଗୌରବ ବଢ଼ା ।

୧୦୭— କାର୍ଯ୍ୟ କର କଥା କହି,
ବାଧା ବିଘ୍ନ ସବୁ ସହି ।

୧୨୪ — ଖଡ଼୍ଗୁଁ ଲେଖନୀ ତୀକ୍ଷ୍ଣ,
ବିନା ରକ୍ତେ ନିଏ ପ୍ରାଣ ।

୧୨୫ — ସ୍ୱଜନେ ନ ଥିଲେ ପ୍ରୀତି,
କାହୁଁ ହେବ ପର ପ୍ରତି ?

୧୨୬ — ବାର ବାର କ୍ଷୁଦ୍ର ଚୋଟେ
ଭୀମ ବଟ ଭୂମେ ଲୋଟେ !

୧୨୭ — ଉପଯୁକ୍ତ ହେବ ଯେବେ
ଲକ୍ଷ୍ମୀକୁ ପାଇବ ତେବେ ।

୧୨୮ — ଅଳସେ ଯେ ସବୁ ହରେ,
ଶ୍ରମଶୀଳେ ଯୋଳ ଘରେ ।

୧୨୯ — କର ପାର ଆଜି ଯାହା
କାଲିକି ନ ରଖ ତାହା ।

୧୩୦ — ଅମୂଲ୍ୟ ସମୟ ଯାଇ
ଗଲେ ଆରେ ନ ମିଳଇ ।

୧୩୧ — ଦରିଦ୍ରତା ଆଳସ୍ୟର
ଅଟେ ଚିର ସହଚର ।

୧୩୨ — ଭ୍ରାତୃପ୍ରେମ ଘରେ ଘରେ
ଲୀଳା କରୁ ଆନନ୍ଦରେ ।

୧୩୩ — ଧର ସର୍ବେ ନବ ବଳ —
କାର୍ଯ୍ୟକ୍ଷେତ୍ରେ ହୁଅ ଠୁଳ ।

୧୩୪ — ଧର୍ମ୍ମଧ୍ୟାନେ କର୍ମ-ଯୋଗ
ଦୂର କରେ ଦୁଃଖ ରୋଗ ।

୧୩୫ — ପରନିନ୍ଦା ମହାପାପ
ପରଦ୍ରୋହେ ବ୍ରହ୍ମଶାପ ।

୧୩୬ — ସତ୍କାର୍ଯ୍ୟର ପରିମଳ
ଖେଳେ ବ୍ୟାପେ ଭୂମଣ୍ଡଳ ।

୧୩୭ — ହେଉ କାର୍ଯ୍ୟର ସାଧନ,
କରୁ ବା ଦେହ ପତନ ।

୧୩୮ — କର୍ମ୍ମମଧ୍ୟ ନାଶ୍ୟକ୍ଷଣେ
କର୍ମକ୍ଷେତ୍ରେ ହେଜ କ୍ଷଣେ ।

୧୩୯ — ଯତନ ନ କଲେ ଭାଇ
ରତନ ମିଳଇ କାହିଁ ?

୧୪୦ — ବାକ୍ୟ ନାରୀ, କାର୍ଯ୍ୟ ନର,
ମତ ଅଟେ ସାଧୁଙ୍କର ।

୧୪୧ — ବଡ଼ ସାନ ମିଳ ଖାଇ
ଦେଶ କାର୍ଯ୍ୟେ ଆସ ଯାଇଁ ।

୧୪୨ — ଦେଶ ପାଇଁ ଅଶ୍ମା କସ,
ଯିବ ସବୁ ଶୋକ କ୍ଷୋଭ ।

୧୪୩ — ନୀରବ କର୍ମ ସାଧନ
ଅଟଇ ମହତ ପଣ ।

୧୪୪ — ମଶାଣିରେ ହେବ ଭେଟ,
ତେବେ କିପାଁ ଖଟେଖଟ ?

୧୪୫ — "ବିଦେଶୀ"କୁ ଦୂରେ ଫିଙ୍ଗି
ହୁଅ "ଦେଶୀ" ଅନୁରାଗୀ ।

୧୪୬ — ମନ ଥିଲେ, ଶତ୍ରୁମତେ
ଦେବ ସ୍ୱାର୍ଥ ଦେଶ ହିତେ ।

୧୪୭ — ଉଦ୍ୟମ କରନ୍ତୁ ବଧ,
ସାଧନାରେ ହୁଏ ସିଦ୍ଧି ।

୧୪୮ — ମାତୃ-ସେବା ହେଲେ ଛାଡ଼ି,
ଦରୁ ଘର ହେବେ ଉଡ଼ି ।

୧୪୯ — ସମୟ, ଜୁଆର ଭାଟ
ନ ରହନ୍ତି କାହାପାଇଁ ।

୧୫୦ — ନାଚ ଯଦି ଉଚ୍ଚ ଘାଟେ
ସୁବୁଦ୍ଧି ଉଡ଼ାଏ ହସେ !

୧୫୧—ଦଳ ଦୁଷ୍ଟ-ଉପଦଳେ
କର୍ମ କର ଧର୍ମବଳେ ।

୧୫୨—ରକ୍ଷା କର ଦୀନ ଜନେ,
କର୍ମ କର କାୟମନେ ।

୧୫୩ — ଆଗେ ଭାବ ନିଜ ମନେ,
ପରେ ପୁଚ୍ଛ ଅନ୍ୟ ଜନେ ।

୧୫୪— ପର ପ୍ରତି ହେଲେ ସାହା,
ସାହା ହେବେ ବନ୍ଧୁ-ନାହା ।

୧୫୫— ନିଶା-ବେଶ୍ୟା-ପଶା-ବୃତ୍ତି
କରଲେ ବୁଡ଼େ ସୁକୃତି ।

୧୫୬—ଯିବ ଯେବେ ଶୁଦ୍ଧି ରବ,
ଥିବ ସଙ୍ଗେ ଯଶ ନେବ ।

୧୫୭—ନିଦ୍ରା-ସୁଖ ଇଚ୍ଛାମତେ
ଲଭିବଟି ଯୁବ-ଗାତେ ।

୧୫୮—ଅଜ୍ଞାତ ଯାହା ନିଜର
ପରଠାରୁ ଶିକ୍ଷା କର ।

୧୫୯—ଦିଅ ଆହେ ପ୍ରେମସିନ୍ଧୁ
ଦୀନ-ଜନେ ଦୟା-ବିନ୍ଦୁ ।

୧୬୦—ରବେ ଅଛୁ ଯେତେ ଧନ,
ସନ୍ତୋଷହିଁ ଶ୍ରେଷ୍ଠତମ ।

୧୬୧—ଅବିରତ ବିନ୍ଦୁପାତେ
ଶିଳା ଚୂର୍ଣ୍ଣ ଏ ଜଗତେ ।

୧୬୨—ସହସ୍ର ଯେନ୍ତୁ ସ୍ୱପଦେ,
ସେନ୍ତୁ ଲେଖା ବନ୍ଧୁ ପଦେ ।

୧୬୩—ସାମାନ୍ୟ ଛିଦ୍ରରେ ବେଳେ
ବୋଇତ ବୁଡ଼ଇ ଜଳେ ।

୧୬୪ — ଅଳ୍ପଭାଷୀ ସାଧୁ ଲୋକ,
ମୂଢ଼ ହୁଏ ଧକଠକ !

୧୬୫ — ସୂତାକୁ ମାଜିଲେ ସରୁ,
କଥାକୁ ମାଜିଲେ ଗରୁ ।

୧୬୬ — ସବୁଠୁଁ ଫମ୍ପା ମାଠିଆ
ଅଟଇ ବଡ଼ପାଟିଆ !

୧୬୭ — ସଦା ଦ୍ୟୁତାସକ୍ତ ଯେହୁ
ବୃତାବସ୍ଥା ଜାଣ ସେହୁ ।

୧୬୮ — କାଳର ଅଦମ୍ୟ ଗର୍ବ
ମୃତ୍ୟୁ ଏକା କରେ ଖର୍ବ ।

୧୬୯ — ବର୍ତ୍ତମାନର ଔଷଧ
ଆଶା, ଭରସା, ପ୍ରବୋଧ ।

୧୭୦ — ଅହଂକାର ନାହିଁ ବୋଲି
ନ ହୁଅନ୍ତି ଅହଂକାରୀ ।

୧୭୧ — ସକଳେ ସମାନ ଜାଣ,
ସହଜେ ପାଇବ ତ୍ରାଣ ।

୧୭୨ — ପବିତ୍ର ପ୍ରେମର ଫଳ
ସବୁଦିନେ ସୁରସାଳ ।

୧୭୩ — ଦୟା, ଦାକ୍ଷିଣ୍ୟ, ପବିତ୍ରତା,
ଆଦର୍ଶ ଏ ତିନ ଦେବତା ।

୧୭୪ — କେବଳ ଭୋଜନ, ଶୟନ
ନୁହଇ ମାନବର ଧର୍ମ ।

୧୭୫ — ନିଜ ଅନ୍ତର ଶାନ୍ତି ଅର୍ଥେ
ସୁକର୍ମ କର ଅନୁରତେ ।

୧୭୬ — ସବୁ ସୁକୃତି ମାନବର
ପୋଡ଼ି ଦିଅଇ ଅହଂକାର ।

୧୭୭ — ଦିଅନ୍ତି ଯାଇ ସୁଖ ଦୁଃଖ,
କାହିଁରେ ନ ହୁଅ ବିମୁଖ ।

୧୭୮ — ନ କରି ମନେ ଅଭିମାନ
ନିଜକୁ ମଣ ସଦା ସାନ ।

୧୭୯ — ବଡ଼ ହେବାକୁ ଯେବେ ଚାହଁ,
ସାନ ହୋଇଣ ପଛେ ଯାଅଁ ।

୧୮୦ — ମାନବ ସଂସାରର ସାର,
ବିଦ୍ୟା ଓ ମନ ହେତୁ ତାର ।

୧୮୧ — ନିଃସ୍ୱାର୍ଥ ଭାବେ କାର୍ଯ୍ୟ କର,
ଫଳକୁ ଅପେକ୍ଷା ନ କର ।

୧୮୨ — ଆଶା ଅଟଇ କାର୍ଯ୍ୟକାରୀ,
ମାନବ ତାର ସହଚରୀ ।

୧୮୩ — ବିଶ୍ୱାସ ବିନା କର୍ମ ଯେତେ
ସଫଳ ନୋହେ କଦାଚିତେ ।

୧୮୪ — ନିଯୁକ୍ତ କର୍ମେ ଥିଲେ ମନ,
ପାପେ ନ ପଶେ ପ୍ରଲୋଭନ ।

୧୮୫ — କୁସଙ୍ଗଠାରୁ ସୁଜନଶୂନ୍ୟ
ବିଜନ-ବାସ ଅଟେ ଶ୍ରେଷ୍ଠ

୧୮୬ — ସଂକୀର୍ଣ୍ଣ ବୃତ୍ତି ପରିହର,
ଉଦାର ନୀତି ଅନୁସର ।

୧୮୭ — ସଂକୀର୍ଣ୍ଣ ମତ ଯାହା ଅଛି
ଦେଶରୁ ତାହା ଦିଅ ପୋଛି ।

୧୮୮ — "ଧନ୍ୟ ଜୀବନ ଏ ଜଗତେ
ଯେ ଦେହ ଧରେ ପ୍ରାଣୀହିତେ ।"

୧୮୯ — "ଯେ ଜନ ଅଟେ କୀର୍ତ୍ତିମନ୍ତ
ଜୀବନ ତାହାର ଅନନ୍ତ ।"

୧୯୦ — "ସର୍ବେ ଚଳିବେ କାଳବଳେ
ଯଶ ରହିବ ମହୀତଳେ ।"

୧୯୧ — "କର୍ମେ ପ୍ରାଣିଏ ଆତଯାତ
କାଳର କ୍ରୀଡ଼ା ଏ ଜଗତ ।"

୧୯୨ — "ପ୍ରାଣିର ଭଲ ମନ୍ଦ ବାଣୀ
ମରଣକାଳେ ତାହା ଜାଣି ।"

୧୯୩ — "ସୁକର୍ମେ ସାଧୁସଙ୍ଗ ମିଳଇ
କୁକର୍ମେ ଅସାଧୁ ମିଳଇ ।"

୧୯୪ — "ସତ୍ୟ ଯେ ଶାନ୍ତ ଦୟା କ୍ଷମା,
ଏ ଗୁଣ ଈଶ୍ୱର ମହିମା ।"

୧୯୫ — "ଉପାୟ କର ନାନା ମତେ
ଫଳିବ କର୍ମର ଆୟତ୍ତେ ।"

୧୯୬ — "ଧନ ଅର୍ଜ୍ଜିଣ ଧର୍ମ କର,
ଧର୍ମେ ପ୍ରାପତ ନରହର ।"

୧୯୭ — "ମର୍ତ୍ତ୍ୟମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ ।"

୧୯୮ — "ସମତା ଦୃଷ୍ଟି ସତ୍ୟ ଭାଷା
ନତ୍ୟେ କରବ ଏଣେ ଆଶା ।"

୧୯୯ — "ସମ ଦେଖିବ ସର୍ବ ଅଂଶେ
ଭେଦ ନ କର ଗୁଣଦୋଷେ ।"

୨୦୦ — "ଯେ ପୁଣ୍ୟ ଆପଣେ କରବ
କେବେହେଁ ପରେ ନ କହିବ ।"

୨୦୧ — "ଦୁଃଖେ ସଞ୍ଚିତ ଯେତେ ଧନ
ସେ ନୋହେ ସୁଖେ ପ୍ରୟୋଜନ ।"

୨୦୨ — "ନର୍ଲୋକେ ସର୍ବ ସଙ୍ଗେ ଥିବ,
କର୍ତ୍ତବ୍ୟ କର୍ମହିଁ କରବ ।"

୨୦୩ — "ଏ ଦେହ ଈଶ୍ୱର ଆପୃତ୍ର
ସ୍ୱକର୍ମପଥେ ଅତଯାତ ।"

୧୦୪ — "ନିଜର ସ୍ୱାର୍ଥେ ମତ୍ତ ହୋଇ
ନ ପୀଡ଼ ଅନ୍ୟ ହିଂସା ବହି ।"

୧୦୫ — "ପ୍ରାଣିର ହିତେ ସର୍ବ ଦେଇ
ତାହାଙ୍କୁ ବୋଲି ପୁଣ୍ୟଦେହୀ ।"

୧୦୬ — "ସମଦରଶୀ ଚିତ୍ତ ଯାର
ମିତ୍ର ଅରିର ନାହିଁ ତାର ।"

୧୦୭ — "ଆତ୍ମ-ପ୍ରଶଂସା ଯେ କରନ୍ତି
ସେ ପ୍ରାଣୀ ନରକେ ପଡ଼ନ୍ତି ।"

୧୦୮ — "ଶରୀର କର୍ମ ମାତ୍ର ଯେତେ
କାହ୍ୱ୍ୟ କରିବ ନିର୍ଲୋକମତେ ।"

୧୦୯ — "ଅମୃତ ଷନସ୍ତ ବଚନ
କହି ତୋଷିବ ପ୍ରାଣୀ ମନ ।"

୧୧୦ — "ଯେ ଫଳଲୋଭେ କରେ କର୍ମ
କର୍ମେ ହୁଏ ତା ମତିଭ୍ରମ ।"

୧୧୧ — "ଜନ୍ମ ଯୌବନ ଜରା ମୃତ୍ୟୁ
ଏ ଗୃହ ଦୁଃଖ-ସୁଖ-ହେତୁ ।"

୧୧୨ — "ହିଂସା ଯାହାର ଲୋଚନ
ହରଇ ଆତ୍ମ ବୁଦ୍ଧି ଜ୍ଞାନ ।"

୧୧୩ — "କେବେହେଁ ନୁହ ଅଭିମାନୀ
ଆତ୍ମ ପରରେ ତତ୍ତ୍ୱଜ୍ଞାନୀ ।"

୧୧୪ — "ଧର୍ମ ଅଧର୍ମ କୁଠବୁଦ୍ଧି
ଏମାନେ କାଠେ ଚିତ୍ତ ଶୋଧି ।"

୧୧୫ — "ନିଜ ସ୍ୱଭାବେ ଯେବେ ଜିଣି
ଶଉର୍ଯ୍ୟ ବୋଲି ତାକୁ ଭଣି ।"

୧୧୬ — "ସକଳ ଦେହେ ଆତ୍ମା ଏକ
ଅଜ୍ଞାନୀ ଜନକୁ ଅନେକ ।"

୧୧୭ — "ସଂସାରେ ସୁଖ ଦୁଃଖ ବେନି
ମିଳଇ ନିଜ କର୍ମ ଘେନି ।"

୧୧୮ — "ସମେ ଯେ ଦୁଃଖ ସୁଖ ମଣି
ସେ ମହାସୁଖୀ ନିତ୍ୟ ଭଣି ।"

୧୧୯ — "ନରରେ ବାମା-ଭୋଗ-ସୁଖ
ତାହାକୁ ବୋଲି ମହାଦୁଃଖ ।"

୨୨୦ — "କର୍ମରୁ ବାସନା ସମ୍ଭୂତ,
ତେଣୁ ବଦ୍ଧ ଏ ଜଗତ ।"

୨୨୧ — "କର୍ମବାସନା-ରଜ୍ଜୁ ବଳେ
ପ୍ରାଣୀ ଭ୍ରମନ୍ତି ଏ ଣସ୍ଥଳେ ।"

୨୨୨ — "ଦେହ ବହିଲେ ନଶ୍ବର ମର,
ମରଣ ଯୁଗରେ କାହିଁ ଡର ?"

୨୨୩ — "ବୁଦ୍ଧି ବିବେକ ଜ୍ଞାନବଳେ
ମରଣ ଜିଣି ପାର ହେଲେ ।"

୨୨୪ — "କପଟତ୍ୟାଗ ଶମ ଦମ
ଏଆଦି ବ୍ରହ୍ମଚର୍ଯ୍ୟ ଧର୍ମ ।"

୨୨୫ — "ଦଣ୍ଡିବା ଶକ୍ତି ଯାର ଥାଇ
ସେ ପୁଣି କ୍ଷମା ଅଚରଇ ।"

୨୨୬ — "ହରିବିମୁଖ ଯେଉଁ ପ୍ରାଣୀ
ନ ତରେ ଭବତରଙ୍ଗିଣୀ ।"

୨୨୭ — "କର୍ମଯୋଗରେ କ୍ଷୁଦ୍ର ବଡ଼,
କର୍ମବିହୀନେ ପ୍ରାଣୀ ଜଡ଼ ।"

୧୨୮ — "ହେଉ ପଛକେ ସେ ନିକୃଷ୍ଟ
ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।"

୧୨୯ — "ସାଧୁଙ୍କ ସହିତ ଜୀବନ
ପରାର୍ଥେ ହୁଏ ପ୍ରୟୋଜନ ।"

୧୩୦ — "ସ୍ୱକର୍ମ ଫଳ ଭୁଞ୍ଜେ ଲୋକ
ଦୈବ କେବଳ ଉପଲକ୍ଷ ।"

୧୩୧ — "କଟୁ କଥାରେ ପାଅ ବ୍ୟଥା,
କପାଇଁ କହ କଟୁ କଥା ?"

୧୩୨ — "ବଶ ଯେ କରନ୍ତି ମନକୁ
ସେ ଜିଣି ପାରେ ଜଗତକୁ ।"

୧୩୩ — "ନ ଥିଲେ ହିତାହିତ ଜ୍ଞାନ
ତୁମ୍ଭେ ହିଁ ତୁମ୍ଭ ଶତ୍ରୁ ଜାଣ ।"

୧୩୪ — "କର୍ମ କର, କର୍ମହିଁ ଜୀବନ,
ଅଳସତା ଜୀବନ୍ତ ମରଣ ।"

୧୩୫ — "କର୍ମ କର, ମାନବ ଜୀବନ
ନିରର୍ଥକ ନୁହେଁ କଦାଚନ ।"

୧୩୬ — "କର୍ମ କର, କନ୍ତୁ ସାବଧାନ
ପର ଛିଦ୍ର ନ କର ସନ୍ଧାନ ।"

୧୩୭ — "ଧ୍ରୁବଭ୍ରୁବେ ଦେଖେ ଯେ ମାନବ
ଆର୍ଯ୍ୟ ଆଖ୍ୟା ତାଠାରେ ସମ୍ଭବ ।"

୧୩୮ — "ବିନା ଶ୍ରମେ ଯତ୍ନେ କିଏ ହେବ ପାର
ଦୁସ୍ତର ଅନନ୍ତ ଭବପାରାବାରେ ।"

୧୩୯ — "ନୁହେଁ କେବେ ଚିର ପ୍ରିୟ ବସ୍ତୁଗଣ,
ସଖା ମାତ୍ର ଏକା ଶ୍ରୀହରିଚରଣ ।"

୧୪୦ — "ବାଜୁ ଦିଗନ୍ତର ଶୁଭ ଶଙ୍ଖଧ୍ୱନି,
ଜାଗୁ ଆନନ୍ଦରେ ଉତ୍କଳ ଧରଣୀ ।"

୧୪୧ — "ଜାଗ ହେ ସରବେ ଉତ୍କଳସନ୍ତାନେ
ଏକତାର ମନ୍ତ୍ର ଜପି ପ୍ରାଣେ ପ୍ରାଣେ ।"

୧୪୨ — "ଧିକରେ ମାନବ ତୋର ଜନ୍ମ ଏ ମରତେ,
ହରଷ ବିଷାଦ ମଧ୍ୟେ ଝୁଲୁଛୁ ନିରତେ ।"

୧୪୩ — "ଅତୀତ ଗୌରବ, ଅତୀତ ବିଭବ
ପଡ଼ୁ ନାହିଁ କାହା ମନେ ?"

୨୪୪ — "ଛୁ ଛୁ ଲାଜ କଥା କହିବା କାହାକୁ
ପ୍ରତିଷ୍ଠାର ପୂଜା ଉଚ୍ଛଳେ ନାହିଁ !"

୨୪୫ — "ନ ଦେଇ ଦୋଷ ଈଶ୍ୱରେ, ଯଶ ହେ କର୍ମକ୍ଷେତ୍ରରେ
ଧର୍ମ ସତ୍ତ୍ୱାପ୍ତ ନୁହନ୍ତି କରମ ହୀନା ।"

୨୪୬ — "ଦଣ୍ଡକ ଖାଉଥିବନ୍ତି, ଜୀବନ ମୂଲ୍ୟ ଅନନ୍ତ
ଯୁଗକ ଖାଲି ବଞ୍ଚିବା ଅକାରଣ ।"

୨୪୭ — ବାବୁଗିରି ପଛେ ଚୁଲିକି ଯାଉ,
ଦେଶର କଉଡ଼ି ଦେଶରେ ଥାଉ ।

୨୪୮ — ବିଳାସ-ଆଳସ୍ୟ-ଶୋଯରେ ଶୋଇ
"ଅକାଳ କୁଷ୍ମାଣ୍ଡ" ନ ହୁଅ କେହି ।

୨୪୯ — ଦେଶର ଯେବେତି ଲୋଡ଼ ମଙ୍ଗଳ
ତହିଁପାଇଁ ଆଗେ ହୁଅ ପାଗଳ ।

୨୫୦ — ଘର ଦେଲେ ଯହିଁ ଚଳଇ କାମ,
ବାବୁଗିରି ତହିଁ ନୁହେ କି ଭ୍ରମ ?

୨୫୧ — ଦେଶ ଧନ ଦେଶେ ପାରିଲେ ରଖି
ଦାନା କନା ପାଇ ବଞ୍ଚିବେ ଦୁଃଖୀ ।

୧୫୨ — ନୀରବରେ କର ଦେଶର କାମ,
ବାହାରେ ତୁଚ୍ଛକୁ ନ ଦେଖା ଢମ ।

୧୫୩ — ଦେଶହିତ ଚନ୍ତା ଛାଡ଼ିବ ଯେବେ,
ବାର ସ୍ଥାନମାନ ହୋଇବ ତେବେ ।

୧୫୪ — ମାତୃଭୂମି ଲୋଡ଼େ ଗୃଶ୍ରେଷ୍ଠ ଫଳ:—
ଧର୍ମ, ଧନ, ବଦ [illegible] ନ ଫ [illegible] ।

୧୫୫ — ସ୍ୱଦେଶୀ ଦରବ [illegible]ଏ
ଦେଶ ଧନ ଦ: [illegible] ଦିଅ ଠେଲି ।

୧୫୬ — ଦେଶର ଦରବ କର ଆଦର,
ଘରର କଉଡ଼ି ନ ଖାଉ ପର ।

୧୫୭ — ସ୍ୱଦେଶୀ ଦରବ ସ୍ୱଦେଶେ ଗଢ଼,
"ମହାକାଳ" ଦେଖି ଭୁଲି ନ ପଡ଼ ।

୧୫୮ — ଦିବା ନିଶି ତୁଚ୍ଛା ସ୍ୱାର୍ଥକୁ ଝୁର
ଘୃଣ୍ୟର ସଙ୍ଗରେ ନ ହୁଅ ସର ।

୧୫୯ — ଆତ୍ମତ୍ୟାଗ ଅବା ଆତ୍ମପ୍ରସାର,
ଉନ୍ନତିପଥରେ ଏ ନୀତି ସାର ।

୨୬୦ — କାର୍ଯ୍ୟରେ ସଂକୀର୍ଣ୍ଣ, ବାକ୍ୟେ ଉଦାର,
ଦେଶେ ଏ କୁନୀତି କେହି ନ ଧର ।

୨୬୧ — ଭଲ ପୋଷାକରେ ନ ଦିଅ ମନ,
ଉଲଗ୍ନ ସୋଦର ପାଉ ବସନ ।

୨୬୨ — ଜୀବନ ନ କାଠ କର ଗୋଲାମୀ,
କି ନିତି ନିଜ ଜନମଭୂମି ।

୨୬୩ — ସ୍ପୃଷ୍ଟେଟ୍ ପକେଟ ଘରକୁ ନିଅ,
ବିନୋଡ଼ି ଅଧ ଦେଶକୁ ଦିଅ ।

୨୬୪ — ନିଜ ଗୋଡ଼େ ନିଜେ ନ ହୋଇ ଠିଆ
ଏଣେ ତେଣେ ଭୁଆଁ ବୁଲୁଛ କିଆଁ !

୨୬୫ — ଦେଶ କାରିଗର ହେଲେ ଉନ୍ନତ,
ପର ପଣ୍ୟେ ଆଉ ନ ବଳା ମନ ।

୨୬୬ — ମାତୃଭୂମି-ସେବା ପବିତ୍ର ବ୍ରତ,
ସେହି ବ୍ରତେ ସର୍ବେ ହୁଅ ଦୀକ୍ଷିତ ।

୨୬୭ — ପର କାର୍ଯ୍ୟେ ପଛେ ଖୋଜୁଥା ବାଦ,
ଦେଶ କାର୍ଯ୍ୟେ ଭୁଲ ସକଳ ଭେଦ ।

୧୬୮ — ବଡ଼ଲୋକେ ବିନା ଉତ୍ତର ନାହିଁ,
ସ୍ୱଦେଶ କାର୍ଯ୍ୟରେ ସମସ୍ତେ ଭାଇ ।

୧୬୯ — ମିଠା କଥା ଖାଲି ତୁଣ୍ଡରେ ଧର
ଦେଶ କାର୍ଯ୍ୟ କେହି ନ ଯାଅ କର ।

୧୭୦ — କାର୍ଯ୍ୟାନ୍ଧାର ଭୁକ୍ତା ନ କର ଭୁଣ୍ଡେ,
"ଷଣ୍ଡ" ବୋଲି ନାଆଁ ନ ପଡ଼ୁ ଦାଣ୍ଡେ ।

୧୭୧ — କାର୍ଯ୍ୟର ଦାୟିତ୍ୱ ନଏ ଯେ ମୁଣ୍ଡେ,
ଶକ୍ତମତେ କାର୍ଯ୍ୟ କରେ ସେ ଦଣ୍ଡେ ।

୧୭୨ — କର୍ମବୀର ଦିନ କାଟଇ ସୁଖେ,
କର୍ମକୋଢ଼ି ଏକା ମରଇ ଦୁଃଖେ ।

୧୭୩ — ପର ସବୁ ଘରୁ ନେଉଛ ଉଡ଼ି,
ବଦଳେ ନ ଦିଏ କାଣିକଉଡ଼ି ।

୧୭୪ — ଧରମ କରମ ଗଲାଣି ସବୁ,
ଯୋବ ଲୁଗା ପିନ୍ଧି ନ ବୋଲାଇ ବାବୁ ।

୧୭୫ — ଉପରେ ଯୋବନ୍ଲ ଭିତରେ ମଳ
ନ ହୁଅ କଦାପି ବାବୁଙ୍କ ଦଳ ।

୧୭୬ — ଚନ୍ଦ୍ରା ପଡ଼ିଯାଏ ଧୋବଲି ଠକ,
ହଂସ ମେଳେ କେବେ ଲୁଚେ କି ବକ ?

୧୭୭ — ଦେଶପାଇଁ ସ୍ୱାର୍ଥ ନ ଦେଲେ କଷ୍ଟ,
ନଜର ଜୀବନ ନୁହେ କି ଷ୍ଟ ଷ୍ଟ ?

୧୭୮ — କେତେ ଶାସ୍ତ୍ର କେତେ ପୁରାଣ ପଢି,
ନ ହୁଅ ହେ ଶେଷେ କରମକୋଢ଼ି ।

୧୭୯ — ମନରେ ନ ଥିଲେ ଧରମ-ଚନ୍ତା,
କି ହେବ ପୂଜିଲେ ଦିଅଦେବତା ?

୧୮୦ — ଦେଶ କଥା ମନେ ନ ପଡ଼େ ଯାର,
ଜୀବନ ମରଣ ସମାନ ତାର ।

୧୮୧ — କର୍ମ-ହୀନ ହୋଇ ନ ରହ ଶୋଇ,
"କୁଳାଙ୍ଗାର" ବୋଲି ନ କହୁ କେହି ।

୧୮୨ — ଧନୀ ଜ୍ଞାନୀ ନୁହୁଁ ଆମ୍ଭେମାନେ,
କାର୍ଯ୍ୟକ୍ଷେତ୍ରେ ଚାଲ ଯାନଙ୍କୁ ଘେନ ।

୧୮୩ — ବଦେଶୀ ଦରବ ଦେଖାସୁନ୍ଦର,
ବିଶେ ଚକଚକ ଫମ୍ପା ଭିତର ।

୧୮୪ — ଦେଶୀୟ ଜିନସ ନଡ଼ିଆ ପର,
ବାହାରେ ଟାଣୁଆ ଭିତରେ ବାର ।

୧୮୫ — ଥିଲେ ଆଉ ପଛେ ଗୁଣ ହଜାର,
ଚରିତ୍ର ନ ଥିଲେ ସବୁ ଅସାର ।

୧୮୬ — ମନ ଦେଲେ ସିନା କାମକୁ ପାଏ,
ଅଲଣା କଥାକୁ ପଚାରେ କଏ ?

୧୮୭ — ମନେ ମନେ କେହି ନ ହୁଅ ଜଣେ,
ତୁମ୍ଭ ପର ଥିବେ ଜଗତେ ପଣେ ।

୧୮୮ — ବାହାଦୁର ଖାଲି ନେବାକୁ ଦାଣ୍ଡେ,
ମିଠା କଥା ତୁଛା ନ ଧର ତୁଣ୍ଡେ ।

୧୮୯ — ଚିନ୍ତା, ବାକ୍ୟ, କାର୍ଯ୍ୟ କଲେ ପବିତ୍ର,
ଧର୍ମଧାମେ ହେବା ଆଦର୍ଶ ପୁତ୍ର ।

୧୯୦ — ଶକ୍ତିମତେ କାର୍ଯ୍ୟ କର ଦେଶର,
ଦାଣ୍ଡକୁ ନ ହୁଅ ଦେଖାସୁନ୍ଦର ।

୧୯୧ — ବଡ଼ ସାନ ଭାଇ ସକଳେ ମିଶି,
ଜାତୀୟତା-ସ୍ରୋତେ ଚାଲ ହେ ଭାସି ।

୨୫୨ — ବାକ୍ୟ କ୍ଷେତ୍ର କେହି ନ କର ମିଛା,
କର୍ମକୋଢ଼ି ବୋଲି ନ ପଡ଼ ଚଛା ।

୨୫୩ — ଉପକାର ଯେବେ କାମକୁ ଆସେ,
ନକର ବୋଲି ସେ ଅଖିକ ଦିଶେ ।

୨୫୪ — ସ୍ୱଦେଶ-ସେବାରେ ହେଲେ ଶରଧା,
ରାଜଶକ୍ତି ତହିଁ ନ ଦିଏ ବାଧା ।

୨୫୫ — ସଂସାର ଯାହାକୁ ଦେଖାଏ ଭୟ,
ଦେଶ-ସେବା ତାକୁ ଦିଏ ଅଭୟ ।

୨୫୬ — ଦେଶହିତେ ଯାର ନାହିଁଟି ମନ,
ପଶୁଠାରୁ ହୀନ ଅଟେ ସେ ଜନ ।

୨୫୭ — ଦେଶ କାର୍ଯ୍ୟେ କେହି ନ କର କଳି,
ଭଗାରି ନ ମାରୁ ପନ୍ତରେ ତାଳି ।

୨୫୮ — ସ୍ୱୀକୃତ ବଚନ କର ପାଳନ,
ପରେ ଭଲ ପାଇ କର ଶାସନ ।

୨୫୯ — "ବନ୍ଦେ ମାତରଂ" ଏହି ସଞ୍ଜୀବନ ମନ୍ତ୍ର
ଚଳାଇବ ଭାରତର କୋଟି ହୃଦ-ଯନ୍ତ୍ର ।

୩୦୦— "ଉତ୍କଳ ଜନନୀ ଆଜି ରହିଛନ୍ତି ଚାହିଁ,
କର୍ତ୍ତବ୍ୟ କରବ ପ୍ରତି ସୁତ ତାଙ୍କ ପାଇଁ ।"

୩୦୧—ଯେ ଦେଶେ ଆଦୃତ ହୁଏ ସ୍ୱଦେଶର ପଣ୍ୟ,
ଭୁଞ୍ଜେ ସେହୁ ସ୍ୱର୍ଗସୁଖ, ଧନ୍ୟଧାମେ ଧନ୍ୟ ।

୩୦୨— ନିଜ ସ୍ୱାର୍ଥେ ମାତି ଯେହୁ ଦେଶ ସ୍ୱାର୍ଥ ଭୁଲେ,
ସଂସାରେ ନାହିଁଟି ଆଉ ମୂର୍ଖ ତାର ତୁଲେ ।

୩୦୩— ସ୍ୱାର୍ଥ ବଳି ଦେଇ ମାତୃ-ଭୂମି ସେବା କଲେ,
ଧର୍ମ, ଅର୍ଥ, ମୋକ୍ଷ, କାମ ପୂର୍ଣ୍ଣ ହୁଏ ଭଲେ ।

୩୦୪— ଧନ, ମାନ, ଗଉରବ ଯେବେ ଅଛୁ ଖୋଜା,
ସ୍ୱାର୍ଥ ତେଜି କର ନିଜ ମାତୃ-ଭୂମି ପୂଜା ।

୩୦୫— କଡ଼ାଏ ଯେ କର ନାହିଁ ଦେଶହିତେ ଦାନ,
ଜାତୀୟ ସମାଜେ ନାହିଁ ଥିଲେ ତାର ସ୍ଥାନ ।

୩୦୬—ଇଚ୍ଛ ଯେବେ ଲଭିବାକୁ ବଳ, ବୀର୍ଯ୍ୟ, ଶୌର୍ଯ୍ୟ,
ସଂଯମୀ ହୋଇଣ ପାଳ ବ୍ରତ-"ବ୍ରହ୍ମଚର୍ଯ୍ୟ" ।

୩୦୭ —ମାନ ଅପମାନ ଆଦି ମନ୍ଦ ଗୁଣ ତେଜି,
ସାର୍ଥ କର ଜୀବନକୁ ମାତୃ-ପଦ ପୂଜି ।

୩୦୮ —ତପ, ଜପ, ଯୋଗ ପୁଣି ଦେବ-ଅରାଧନା,
ଫଳ ନାହିଁ ତହିଁ ଥିଲେ ଦେଶସେବା ବନା ।

୩୦୯ —ଗ୍ରାନ୍ଧୀ ଅଟଇ ଜାଣ ଦେଶ-କର୍ଣ୍ଣାଧାର,
ତାର ପନ୍ଥା ଅନୁସର ମାତାଙ୍କୁ ଉଦ୍ଧର ।

୩୧୦ —ମାତୃଭୂମି ପୂଜା ବନା ପୂଜିଲେ ଇତର,
ସୁସିଦ୍ଧ ନୁହେ ସେ ପୂଜା ଜାଣ ଏହା ସ୍ଥିର ।

୩୧୧ —ବାକ୍ୟବୀର ଦାମ୍ଭ ହାଟେ ଭକ୍ତ ଭୁକ୍ତ ମରେ,
କର୍ମବୀର କର୍ମସୂତ୍ର ଖୋଜେ ନିରନ୍ତରେ ।

୩୧୨ —ଜୀବନର ଲକ୍ଷ୍ୟ ଭୁଲି ନ କର ଗୋଲାମୀ,
ଦେଶହିତ କାର୍ଯ୍ୟ କର ପୂଜ ଜନ୍ମ-ଭୂମି ।

୩୧୩ —ସାନ ବଡ଼ ଭୁଲି ମନେ ଦେଇ ପ୍ରେମ-ଗଣ୍ଠି,
ଏକତା ମୂଠି କର ସ୍ୱଦେଶର ପାଣ୍ଠି ।

୩୧୪ —ଏ ଭଙ୍ଗୁର ଦେହ ଭାଇ, ଯିବ ଦିନେ ଧ୍ୱଂସି,
ଏଣୁ ତାକୁ ବଳି ଦିଅ ପର-ହିତ ଲାଗି ।

୩୧୫ —"ରେ ସୁସୁପ୍ତ ପ୍ରାଣ, ନେତ୍ର ଯେବେ ସୁଖଭୋଗ,
ସଖେ କର ପଦାଘାତ ସାଧ କର୍ମଯୋଗ ।"

୩୧୬ — "କର୍ମ କର, ଗଳଗ୍ରହ ନ ହୁଅ ପରର,
ନ ହୁଅ ପ୍ରତ୍ୟାଶୀ ଛାଡି ବନ୍ଧୁ କୁଟୁମ୍ବର ।"

୩୧୭ — "ଯେପରି ସାଧିବ ସିଦ୍ଧି ହୋଇବ ତେସନ,
ଅତଏବ କର୍ମ-ଯୋଗ ସାଧ ଅନୁକ୍ଷଣ ।"

୩୧୮ — "କର୍ମ କର ବୀର ପରି ପ୍ରଭୁ ଶକ୍ତି ନେଇ,
ନ ଦିଅ ଭାଗ୍ୟର ଦୋଷ କ୍ରୀତଦାସ ହୋଇ ।"

୩୧୯ — "ମାତୃଭୂମି ମାତୃଭାଷା ଉଭୟେ ଜନନୀ,
ଭକ୍ତିଭରେ ପୂଜ ତାଙ୍କୁ ଦିବସ ରଜନୀ ।"

୩୨୦ — ନିଜ ଇଷ୍ଟସିଦ୍ଧି ସଙ୍ଗେ ଦେଶହିତ ଅଶେ
ଜଣାଅ ନରତେ ଭାଇ, ବିଶ୍ୱରାଜ ପାଦେଶ ।

୩୨୧ — "ଶୋଭା, ଲକ୍ଷ୍ମୀ, ବୁଦ୍ଧି, କୀର୍ତ୍ତି ଆବର ଧୀରତା,
ମାନବହୃଦୟବାସୀ ଏ ପଞ୍ଚ ଦେବତା ।"

୩୨୨ — "ଏକମାତ୍ର ସେହି ବିଦ୍ୟା ମାନବନୟନ,
ସେ ନୟନ ନାହିଁ ଯାର ଅନ୍ଧ ସେହି ଜନ ।"

୩୨୩ — ଗୋଟିଏ ପଢୁକେ ହେଉ ପୁତ୍ର ଗୁଣବାନ,
ଶତ ଶତ ମୂର୍ଖ ପୁତ୍ରେ ନାହିଁ ପ୍ରୟୋଜନ ।

୩୨୪— "କର୍ମଦୋଷେ କ୍ରମେ କ୍ରମେ ହୁଏ ଅଧୋଗତି,
କର୍ମଗୁଣେ କ୍ରମେ କ୍ରମେ ଜାଣିବ ଉନ୍ନତି ।"

୩୨୫— "ଦିନ ରାତି କର ଭାଇ ପୁଣ୍ୟ ଆଚରଣ,
ସଂସାର ଅନିତ୍ୟ ମନେ ରଖ ଅନୁକ୍ଷଣ ।"

୩୨୬— "ଦୁଷ୍ଟର ସଂସର୍ଗ ହେତୁ ପ୍ରାଣାନ୍ତେ ସଜ୍ଜନ
ନିଜ ସାଧୁ ଭାବ କେବେ ନ କରେ ବର୍ଜନ ।"

୩୨୭— "ସନ୍ତୋଷରୂପ ରତନ ହୃଦୟରେ ଧର
ସଂସାରେ ସକଳ କାର୍ଯ୍ୟ ଧୀରେ ସାଧ କର ।"

୩୨୮—ନିଜ ଦୋଷ ଆଗେ ବୁଝି କର ସଂଶୋଧନ,
ପରେ ଯାଇଁ ପର ଦୋଷ କର ଅନ୍ୱେଷଣ ।

୩୨୯—ଦେଶବାସୀ ନରନାରୀ ସମସ୍ତେ ଭାଇ ଭଉଣୀ,
ପିତା ସେହି ଦୁଃଖହାରୀ, ଜନନୀ ଜନ୍ମଭୂମି ।

୩୩୦—ଯାହା ଅଛି ନିଜ ଘରେ ଇଚ୍ଛାମତେ ବାଛି ନିଅ.
ନ ଡାକ ପର ଦୁଆରେ 'ବାବୁ ! କିଛି ଭିକ୍ଷା ଦିଅ ।'

୩୩୧—ଧନ ରତ୍ନ ଆଦି ମାତା ସଞ୍ଚିଛନ୍ତି ଯାହା ଯେତେ,
ଦେଶର ଯେ ଜ୍ୟେଷ୍ଠ ଭ୍ରାତା କହିଛି ତାଙ୍କର ହାତେ ।

୩୩୨ — ପିତା ଯାହା ଦେଇଛନ୍ତି ସନ୍ତାନପୋଷଣ ପାଇଁ,
ମାତା ତାହା ରଖିଛନ୍ତି କାନରେ ଗଣ୍ଠି ପକାଇ ।

୩୩୩ — ରକ୍ତ ମାଂସ ଦେହ ବହି ହେ ଉତ୍କଳୀ ଝିଅ ପୁଅ,
କେମନ୍ତେ ଧରଛ ଛାତି ମା ଆଖିରେ ଦେଖି ଲୁହ ?

୩୩୪ — ଆମ୍ଭେମାନେ ଏତେ ଭଣ୍ଡ ମାଆକୁ ତଳେ ପକାଇ
ଘୋଡ଼ା-ମୁହେଁ ବୁଲୁ ଦାଣ୍ଡେ ସ୍ୱାର୍ଥର ଚକ୍କା ବଜାଇ ।

୩୩୫ — ମା ଆମ୍ଭର ଘରଘରେ ଥିଲା ଦିନେ ରାଜରାଣୀ,
ଆଜି ପୁଣି ପରଦ୍ୱାରେ ଅଇଁଠାର କାଙ୍ଗାଳୁଣୀ ।

୩୩୬ — 'ଗତସ୍ୟ ଶୋଚନା ନାସ୍ତି 'ଆସ ଭାଇ ଉଠି ଆସ,
ବହିକ ବହିବା ଶାସ୍ତି ଫେଡ଼ି ମାତୃ-ଦୈନ୍ୟ-ପାଶ

୩୩୭ — ନବାରଣ ଗୀତ ଶ୍ଳୋକ ବାସ ଖାଦ୍ୟ ଜନନୀର
ମିଳି ସବୁ ପୁଅପାକ ଚୁମ୍ବିବା ପଦାଂଘ୍ରୀ ତାର ।

୩୩୮ — ହସ ନେ ମା ହସ ହସ ଯାହିଲାଣି କଣି ଘୋର,
ଭୁଞ୍ଜି ପ୍ରଭାତ ନବସ୍ୱ ଚେତିଲେଣି ପୁଏ ତୋର ।

୩୩୯ — ଦୟା ପବତ୍ରତା ବଳସ୍ୱ ନମ୍ରତା
ସହିଷ୍ଣୁତା କ୍ଷମାଧାର ଯେହିଁଠି

ସ୍ୱର୍ଗ ତାର ହୃଦେ, ନମ ତାର ପଦେ,
ଭବେ ଦେବରୂପୀ ଅଟେ ସେହି ।

୩୪୦ — ନିଃସ୍ୱାର୍ଥ ଭାବରେ ସ୍ୱଦେଶ ହିତରେ
ଢାଳି ଦିଏ ଯେହୁ ଜୀବନ ମନ,
ଧନ୍ୟ ତା ଜନମ, ଧନ୍ୟ ତା ଜୀବନ,
ଧନ୍ୟ ତା କରମ, ଧନ୍ୟ ସେ ଜନ ।

୩୪୧ — "ଅତୀତ ଗୌରବ, ଅତୀତ ବିଭବ
ଦହୁ ନାହିଁ କାହା ମନ,
ପାସୁ ଦୁଃଖ-ଦଶା, ଦୁଖିନୀ ଓଡିଶା
ଦେଖୁ ବାରେ ଶୁଭ ଦିନ ।"

୩୪୨ — "ଉଠ ଉଠ ଭାଇ, ଶୋଇ କାର୍ଯ୍ୟ ନାହିଁ,
ପାହିଲାଣି ଅମାରାତି;
ନବୀନ ଉତ୍ସାହେ, କାର୍ଯ୍ୟେ ଲାଗିଯାଅ
କାର୍ଯ୍ୟେ ରତ ସବୁ ଜାତି ।"

୩୪୩ — "ଅଦମ୍ୟ ଉତ୍ସାହ, ଅକ୍ଳାନ୍ତ ଶ୍ରମର
ବଶ ହୋଇ ଉଠ ଉଠ ବନ୍ଧନ,
ଦୁଃଖିନୀ ଜନନୀ ଦୁର୍ଗତି ହରଣେ
ଲାଗ ଭାଇ କର ସର୍ବସ୍ୱ ପଣ ।"

୩୪୪—ଉନ୍ନତିନିଦାନ ନିଜ ଦେଶଭାଷା,
ତା ସେବାରେ ଦିନ ଯାଉ,
ସ୍ୱର୍ଗରୁ ମହତ ଜନମଭୂମି ଟି,
ଲକ୍ଷ ତହିଁ ଦୃଢ଼ ଥାଉ !

୩୪୫—"ଅଳସ ନିଶ୍ଚେଷ୍ଟ ମ୍ରିୟମାଣ ସଦା
ଉତ୍କଳୀୟେ ନ ରହ ଆଉ,
କର୍ମର ସାଧନେ ଦିଅ ଦିଅ ପ୍ରାଣ
ଲାଜ ହୀନତା ଗୁଚିଯାଉ ।"

୩୪୬—"ଅରଜ ହେ କର୍ମର ସମ୍ପଦ
'କର୍ମହିଁ ଧର୍ମ' ମନ୍ତ୍ର ଜପି
ହୁଅ ସତ୍ୟ-ଜ୍ଞାନ-ବିଶାରଦ
ବଳ ବୁଦ୍ଧି ସବୁ ଅରପି ।"

୩୪୭—"ହେ ଉତ୍କଳ ଯୋଗ୍ୟ ସୁତ,
କର ମାତୃଭୂମି ହିତ ।
ଦୁଃଖିନୀ ଜନନୀ ଦୁଃଖ
ଦେଖି କି ହେଲ ବିମୁଖ ?"

୩୪୮—"ଯା ଖ୍ୟାତି ନାହିଁ ଜଗତରେ,
ଲୋକର ମଙ୍ଗଳ ନ କରେ,

ନ ପାରେ ଦେଶର କଲ୍ୟାଣ,
ବୃଥା ଅଛେ ତାର ପ୍ରାଣ ।"

୬୪୯ — "ଅସାଧ୍ୟ କି ଅଛି ଜଗତେ ?
ସକଳ ଯତ୍ନର ଆୟତ୍ତେ ।
ମାନବ ଯାହା କରପାରେ
କହଁ । ଅସାଧ୍ୟ ତୁମ୍ଭଠାରେ ?"

୬୫୦ — ଯାଇ ପାଶ୍ଚାତ୍ୟ ଅନେକ,
ଜାଗିଲେ ସକଳ ଲୋକ;
ତୁମ୍ଭେ କାହିଁକି ନ ତେଜ
ଦିବା ନିଶି ସୁଖଶେଯ ।

୬୫୧ — ଦେଇ ମନ ପ୍ରାଣ ଧନ
କର ଉନ୍ନତି ବର୍ଦ୍ଧନ ।
ନ ଛାଡ଼ ଶୁଭମୁହୂର୍ତ୍ତ
ବ୍ୟସନେ ରହି ସତତ ।

୬୫୨ — ଏବେ ସର୍ବେ ଏକ ହୋଇ
ଭେଦାଭେଦ ଛାଡି ଦେଇ
ପ୍ରାଣପଣେ ଲାଗ ଯାଇ
ସ୍ୱଦେଶର ହିତପାଇଁ ।

୩୫୩ — ଭାଇ ଭାଇ ହୋଇ ଏକ
ରଖ ମାତୃଭୂମି ଟେକ,
ଦୂର ହେବ ସର୍ବ ଦୁଃଖ,
ଭୁଞ୍ଜିବ ବିମଳ ସୁଖ ।

୩୫୪ — ବିଷାଦ ଆଲସ୍ୟ ତେଜି
ଅତୀତ ଗୌରବ ହେଜି,
ପୂଜିବା ମାତୃ ଚରଣ,
ଯାଉ ବା ରହୁ ଜୀବନ ।

୩୫୫ — ମାତୃଦୁଃଖ ଦେଖି କାପୁରୁଷ ପରି
କାଳ ଅତିପାତ କରେ ଯେ ଜନ,
ଶୃଙ୍ଗଲାଙ୍ଗୁଳହୀନ ହେଉ ପଶୁ ବିନା
ତାକୁ ଆଉ କହା ଯିବ କି ଆନ !

୩୫୬ — "ନୈତିକ ସାହସେ ହୋଇଣ ସାହସୀ,
କର୍ତ୍ତବ୍ୟ-ରୂପିଣୀ ତରୀ ପରେ ବସି,
ବିବେକ ଆହୁଲା ଅବିରତେ ମାର,
ହେବ ଯେବେ ତେବେ କର୍ମ ସିନ୍ଧୁ ପାର ।"

୩୫୭ — "ପ୍ରେମମନ୍ତ୍ରେ ଯାର ଅନ୍ତର ପୂରିତ
[ସର୍ବ ପ୍ରାଣୀ ହୃଦ ତା ହୃଦେ ଅଙ୍କିତ,

ସହାନୁଭୂତି ସଙ୍ଗ ଭୂତେ ତାର,
ତା ଦୃଷ୍ଟିରେ ବସୁ ଏକପରିବାର ।"

ଓ-୫୮ — "ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି,
ଧର୍ମ ଏକା ସିନା ମହତପଣିଆ,
ଆଉ ବଡ଼ପଣ ଅଡ଼େଇଦିନିଆ ।"

ଓ-୫୯ — "କର୍ମହିଁ ଜୀବନ, କର୍ମହିଁ ଉଦ୍ଦେଶ୍ୟ,
ଜଡ଼ତା ଜୀବନ୍ତ ମରଣ ସିନା,
ଦୁର୍ଲ୍ଲଭ ମାନବ-ଜୀବନ ବ୍ୟର୍ଥ
ଅବଶ୍ୟ କର୍ତ୍ତବ୍ୟ ସାଧନ ବିନା ।"